# ଶୀତଳା ସ୍ତୋତ୍ରଂ ।

ଶୀତଳା ସ୍ତୁତ ।
ଶାରଦା ବନ୍ଦନା ।
ଦୀନବନ୍ଧୁ ଜଣାଣ ।
ଭଜନ ।

ଭକ୍ତିଭରେ ଏହି ସ୍ତୋତ୍ର କର ହେ ପଠନ,
ନିଶ୍ଚୟ ବସନ୍ତ ଯରୁ ହେବ ନିବାରଣ ।



ଶ୍ରୀ ଗୋବିନ୍ଦ ରଥଙ୍କଦ୍ୱାରା ସଂଗୃହୀତ ହୋଇ
ଚତୁର୍ଥବାର ପ୍ରକାଶିତ ହେଲା ।

୧୯୦୪.

ମୂଲ୍ୟ ଠ ୦ / ଅଣା ମାତ୍ର ।

# ଶୀତଳା ସ୍ତୋତ୍ରଂ ।



ଶ୍ରୀ ଶୀତଳାୟୈ ନମଃ ।

ଶୀତଳାସ୍ତୋତ୍ରସ୍ୟ । ପୁରନ୍ଦରଋଷିଃ ।
ଅନୁଷ୍ଟୁପ୍ ଛନ୍ଦଃ । ଶ୍ରୀ ଶୀତଳାଦେବତା ।
ମମାଭୀଷ୍ଟସିଦ୍ଧ୍ୟର୍ଥେ ବିନିଯୋଗଃ । ଧ୍ୟାନଂ ।
ଯା ଶୂର୍ପପୂର୍ଣ୍ଣପରିଶୋଭିତମସ୍ତଦେଶ୍ୟଂ ।
ଯା ମାର୍ଜନୀକଲଶଶୁଭ୍ରକରାବଲମ୍ବା ।
ଯା ରାସଭାନନତନୂପରିରାଜମାନା ।
ସା ଶୀତଳା ଭବତୁ ଦେବୀ ଶୁଭାୟ ନିତ୍ୟଂ ।

ସ୍କନ୍ଦ ଉବାଚ ।

ଭଗବନ୍ ଶ୍ରୋତୁମିଚ୍ଛାମି ଶୀତଳାସ୍ତୁଷ୍ଟକଂ ଶୁଭଂ ।
ବକ୍ତୁମର୍ହସ୍ୟଶେଷେଣ ବିସ୍ଫୋଟକଭୟାପହଂ ।

ଈଶ୍ୱର ଉବାଚ ।

ନମାମି ଶୀତଳାଂ ଦେବୀଂ ରାସଭସ୍ଥାଂ ଦିଗମ୍ବରାଂ ।
ମାର୍ଜ୍ଜନୀକଲଶୋପେତାଂ ଶୂର୍ପାଲଙ୍କୃତମସ୍ତକାଂ ।
ବନ୍ଦେଽହଂ ଶୀତଳାଂ ଦେବୀଂ ସର୍ବରୋଗଭୟାପହାଂ ।
ଯାମାସାଦ୍ୟ ନିବର୍ତ୍ତେତ ବିସ୍ଫୋଟକଭୟଂ ମହତ୍ ।
ଶୀତଳେ ଶୀତଳେ ଚେତି ଯୋ ବ୍ରୂୟାଦ୍ଦାହପୀଡିତଃ ।
ବିସ୍ଫୋଟକଭୟଂ ଘୋରଂ କ୍ଷିପ୍ରଂ ତସ୍ୟ ପ୍ରଣଶ୍ୟତି ।
ଯସ୍ତ୍ୱାମୁଦକମଧ୍ୟେ ତୁ ଧ୍ୟାତ୍ୱା ସମ୍ପୂଜୟେନ୍ନରଃ ।
ବିସ୍ଫୋଟକଭୟଂ ଘୋରଂ ଗୃହେ ତସ୍ୟ ନ ଜାୟତେ ।
ବିସ୍ଫୋଟଜ୍ୱରଦଗ୍ଧସ୍ୟ ପୂତିଗନ୍ଧଗତସ୍ୟ ଚ ।
ପ୍ରନଷ୍ଟଚକ୍ଷୁଷଃ ପୁଂସସ୍ତ୍ୱାମାହୁର୍ଜୀବନୌଷଧଂ ।

ଶୀତଲେ ତନୂଜାନ୍ ରୋଗାନ୍ନୃଣାଂ ହରସି ଦୁସ୍ତ୍ୟଜାନ୍ ।
ବିସ୍ଫୋଟକବିଶୀର୍ଣ୍ଣାନାଂ ତ୍ୱମେକାମୃତବର୍ଷିଣୀ ।
ଗଲଗଣ୍ଡଗ୍ରହାରୋଗା ଯେ ଚାନ୍ୟେ ଦାରୁଣାନୃଣାଂ ।
ତ୍ୱଦନୁଧ୍ୟାନମାତ୍ରେଣ ଶୀତଲେ ଯାନ୍ତି ସଂକ୍ଷୟଂ ।
ନ ମନ୍ତ୍ରୋ ନୌଷଧଂ ତସ୍ୟ ପାପରୋଗସ୍ୟ ବିଦ୍ୟତେ ।
ତ୍ୱମେକା ଶୀତଲେ ଧାତ୍ରୀ ନାନ୍ୟାଂ ପଶ୍ୟାମି ଦେବତାଂ ;
ମୃଣାଳତନ୍ତୁସଦୃଶୀଂ ନାଭିହୃନ୍ମଧ୍ୟସଂସ୍ଥିତାଂ ।
ଯସ୍ତ୍ୱାଂ ସଞ୍ଚିନ୍ତୟେଦ୍ଦେବି ତସ୍ୟ ମୃତ୍ୟୁର୍ନ ଜାୟତେ ।
ଅଷ୍ଟକଂ ଶୀତଳାଦେବ୍ୟା ଯଃ ପଠେନ୍ମାନବଃ ସଦା ।
ସର୍ବବ୍ୟାଧିବିନିର୍ମୁକ୍ତଃ ସ ତସ୍ୟ ପୂର୍ବବେଦ୍ନରଃ ।
ଶ୍ରୋତବ୍ୟଂ ପଠିତବ୍ୟଂ ଚ ଶ୍ରଦ୍ଧାଭକ୍ତିସମନ୍ୱିତଃ ।
ଉପସର୍ଗବିନାଶାୟ ପରଂ ସ୍ୱସ୍ତ୍ୟୟନଂ ମହତ୍ ।
ଇତି ଶ୍ରୀ ସ୍କନ୍ଦପୁରାଣେ ଶୀତଳାସ୍ତୋତ୍ରଂ ସମ୍ପୂର୍ଣ୍ଣଂ ।

---

## ଶ୍ରୀ ଶୀତଳାଙ୍କ ସ୍ତୁତି ।

ପ୍ରଥମତଃ ପୂଜା କରି ତଦନନ୍ତର ସ୍ତୁତି ପାଠ କରିବ ।
ଶୀତଲା ଚ ଜଗନ୍ମାତା ଶୀତଲା ଚ ଜଗତ୍ପିତା ।
ଶୀତଲା ଚ ଜଗଦ୍ଧାତ୍ରୀ ଶୀତଲାୟୈ ନମୋନମଃ ।

ଜୟ ତୁ ମଙ୍ଗଳା ମାଗୋ ଜୟ ହରଚଣ୍ଡି । ତୋତେ ସୁମରିଲେ ମାଗୋ ବିପତ୍ତି ହୋଏ ଖଣ୍ଡି । ଅନ୍ତକାଳେ ମାଗୋ ସୁମରେ ଯେଉଁଜନ । ବିପତ୍ତି ଦେଖିଣ ତାର ଫେଡ଼ୁ ତୁ ବନ୍ଧନ । ଗାଳ ତୁ ନ ସହୁ ମାଗୋ ଗରବ ନ ସହୁ । ଅନ୍ତକାଳେ ମାଗୋ ପ୍ରାଣିଙ୍କି ତାରି ନେଉ । ଯେତେବେଳେ ପ୍ରାଣିଙ୍କି ମାଗୋ ପଡ଼ୁଥାଇ କଷ୍ଟ । ତୋ-ନାମ ଧରିଲେ ମାଗୋ ଫିଟଇ ଶଙ୍କଟ । ଜୟତୁ ଅମ୍ବିକା ମାଗୋ

ଶଙ୍କରଭବାନୀ । କର ତୁ ସୁଦୟା ମାଗୋ ଦନୁଜନାଶିନୀ ॥ ଶୋକ ସମୁଦ୍ରରେ ମାଗୋ ବୁଡନ୍ତ ମୋର ବେଳା । ଦୁସ୍ତର ପଡନ୍ତ ମାଗୋ ଉଦ୍ଧର ମଙ୍ଗଳା ॥ ଶାଖା ସହୋଦର ମାଗୋ ବନ୍ଧୁବର୍ଗ ନାହିଁ । ଅନ୍ତକାଳରେ ସାହା ହୁଅ ମହାମାୟୀ ॥ ଅଦୃଶ୍ୟକୁ ଦୃଶ୍ୟ ମାଗୋ ତୋ ନାମ ଧଇଲେ । ବିପତ୍ତି ନ ଥାଇ ମାଗୋ ତୋତେ ଅଶ୍ରେ କଲେ ॥ ଅନାଥକୁ ବକ୍ରସେଥା ମାଗୋ ଦୁବ କରୁ ଦାରୁ । ଶଙ୍କଟ ପଡ଼ିଲେ ମାଗୋ ପ୍ରାଣିଙ୍କି ଉଦ୍ଧରୁ ॥ ଯେ ତୋହର ବାରବ୍ରତ କରୁ-ଥାଇ ନର । ଦେନ୍ତି ଧନ ଜନ ମାଗୋ ଖଣ୍ଡି ତା ଦୁର୍ଗତି ॥ ନମୋ କାଳରାତ୍ରି ମାଗୋ ଅପର୍ଣ୍ଣା ପାର୍ବତୀ । ଭ୍ରମଣ କର ଯାଉ ମାଗୋ ନିଶାଅର୍ଦ୍ଧରାତ୍ର ॥ ଚଣ୍ଡୀ ଯେ ଚାମୁଣ୍ଡା ମାଗୋ ଘେନ ସଙ୍ଗତର । ଏକାନ୍ତ ଘେନାଣ ମାଗୋ ଭ୍ରମଣି ତୋହର ॥ ସିଂହର ପିଠିରେ ମାଗୋ ବିଜେ କର ଯାଉ । ଯେ ମୁଖେ ପଡଲେ ମାଗୋ ନ ବର୍ତ୍ତଇ ଆଉ ॥ ବିନ୍ଧ୍ୟଗିରିବାସିନୀ ମାଗୋ ହିମବତର ଦୁହିତା । ଅଷ୍ଟଗୋଷ୍ଠି ନାମ ତୋତେ ଦେଲାକ ବିଧାତା ॥ ଝଙ୍କଡ଼େ ରହିଲୁ ମାଗୋ ଶାରଦା ନାମ ବହି । କାକଟପୁରେ ରହିଲୁ ମାଗୋ ମଙ୍ଗଳା ବୋଲାଇ ॥ କୋଣାର୍କେ ରହିଲୁ ମାଗୋ ଅଦ୍ୟାରାମଚଣ୍ଡୀ । ଟହ ଟହ ବଦନୀ ମାଗୋ ସିନ୍ଦୂରେ ମୁଖମଣ୍ଡି ॥ ଶ୍ରୀପୁରୁଷୋତ୍ତମେ ରହିଲୁ ମାଗୋ ନାମ ବିମଳାଇ । ବାଙ୍କିରେ ରହିଲୁ ମାଗୋ ନାମ ଚର୍ଚ୍ଚିକାଇ ॥ ଢାଳ-ଚେରେ ରହିଲୁ ମାଗୋ ହିଙ୍ଗୁଳା ନାମ ବହି । ଯାଜପୁରେ ରହିଲୁ ମାଗୋ ବିରଜା ବୋଲାଇ ॥ ବାଣପୁରେ ରହିଲୁ ମାଗୋ ନାମ ତୋ ଭଗବତୀ । ଏମନ୍ତେ ଯେ ଅଷ୍ଟନାମେ ଅଟଇ ତୋ ସ୍ତୁତି ॥ ଏହି ଅଷ୍ଟ ନାମ ମାଗୋ ଧାତା ଗଲା ଦେଇ । ଅଷ୍ଟକୋଷ ମାଡ଼ି ମାଗୋ ରହିଲୁ ମହାମାଇ ॥ ଭୁବନେଶ୍ୱରେ ରହିଲୁ ମାଗୋ ନାମ ତୋ ଗଉରୀ । ନମସ୍ତେ ଚଣ୍ଡିକା ମାଗୋ ଅମ୍ବିକା ଶାକମ୍ଭରୀ ॥ ନମସ୍ତେ ଚଣ୍ଡିକା ମାଗୋ ଦୋଷ କର କ୍ଷମା । କେ କହିପାରିବ ମାଗୋ ତୋହର

ମହିମା ॥ ଡମରୁମଧ୍ୟା ମାଗୋ ବନ ତୋ ଗୃହାଣି । ବିପତ୍ତିନାଶିନୀ ମାଗୋ ଅନ୍ନ ଶାଅନ୍ତ୍ୟାଣୀ ॥ ତାଡ ଯେ ତୋହର ମାଗୋ ଭୁଜେ ରତ୍ନ ଚୂଡ଼ । କନକ କେତକୀ ମାଗୋ ଶୋଭଇ ହାରକଣ୍ଠି ॥ ରଙ୍ଗ ବସ୍ତ୍ର ପହରଣ ମାଗୋ କୁଙ୍କୁମ ଲେପନ । ପଦ୍ମରେ ଅଳତା ମାଗୋ ହସଣେ ଶୋଭାବନ ॥ ହୃଦରେ ପଦକ ମାଗୋ ଦୋସରି ସୁନାସୂତା । ହଣ୍ଡ-ମହର ତଡ଼ା ମାଗୋ କଣ୍ଠରେ ପଇତା ॥ ନାନାଦି ବର୍ଣ୍ଣରେ ମାଗୋ ଫୁଲମାଳ ଶୋହେ । ଅଶେଷ ମହିମା ମାଗୋ ତ୍ରିଭୁବନ ମୋହେ ॥ ଲହଲହ ଜିହ୍ୱା ମାଗୋ ଘୋର ଦନ୍ତ ପାନ୍ତି । ନମୋ ଆଦିମାତା ମାଗୋ ବିଜୟେ ଚିହ୍ନପିଠି ॥ କାଣ୍ଡ ଯେ ଖପର ମାଗୋ ବିଜୟେ ବେନି କର । ଶଙ୍ଖଚକ୍ର ଗଦା ମାଗୋ ଅଙ୍କୁଶ ତୋହର ॥ ପ୍ରସନ୍ନ ବଦନୀ ମାଗୋ ହରିଣୀ ନୟନୀ । ଦାରିଦ୍ର୍ୟଭଞ୍ଜନ ମାଗୋ ସମ୍ପଦ ଦାୟିନୀ ॥ ନମସ୍ତେ କାଳରାତ୍ରି ମାଗୋ ସର୍ବଜୟୀ ବିଜୟୀ । ତୋତେ ସୁମରିଲେ ମାଗୋ ବିପତ୍ତି ନ ଥାଇ ॥ ତ୍ରେତୟାଯୁଗରେ ମାଗୋ ସୁମରିଲେ ରାମ । ସୀତା ହରାଇଣ ଯେ ବୁଲନ୍ତି ବନେବନ ॥ ଅତଙ୍କ କାଳରେ ଚିନ୍ତା କଲେ ଦାଶରଥି । ଶୂନ୍ୟରେ ଥାଇଣ ଅଜ୍ଞା ଦେଲୁ ଗୋ ଭଗବତୀ ॥ ଶୂନ୍ୟରେ ଥାଇଣ ମାଗୋ ତାଙ୍କୁ ବର ଦେଲୁ । ରାବଣ ମାରଣ ସୀତା ଆଣ ତୁ ବୋଇଲୁ ॥ ତୋହର ଆଜ୍ଞାରେ ରାମ ଲଙ୍କା ଜୟ କଲେ । ରାବଣକୁ ମାରଣ ଯେ ସୀତାଙ୍କୁ ଆଣିଲେ ॥ ସୀତା ଘେନି ଅଯୋଧ୍ୟାକୁ ଗଲେ ଦାଶରଥି । ନମୋ ଆଦି ମାତା ମାଗୋ ନମୋ ଆଦିଶକ୍ତି ॥ ସତ୍ୟଯୁଗେ ବ୍ରହ୍ମାଙ୍କୁ ଯେ ପଡ଼ିଲା ଅପଜୟେ । ତୋତେ ସୁମରଣା ମାଗୋ କଲେଟି ମହାମାୟେ ॥ ବ୍ରହ୍ମାଙ୍କର କଷ୍ଟ ମାଗୋ ସହି ନ ପାରିଲୁ ॥ ଗୁରୁପୁତ୍ର ହଅ ବୋଲି ଯମକୁ ଡାକିଲୁ ॥ ତୋହର ଆଜ୍ଞାରେ ଯମ ଗୁରୁପୁତ୍ର ଦେଲେ । ଗୁରୁପୁତ୍ର ଘେନି ନିଜ ଆଶ୍ରମକୁ ଗଲେ ॥ ସେହି ଦିନ ବ୍ରହ୍ମା ତୋତେ ଦେଇଗଲେ ବର । ଜନ୍ମେ ଜନ୍ମେ ହୋଇବୁ ତୁ ସିଦ୍ଧ ଯେ ଶଙ୍କର ॥ ତ୍ରେତାଯୁଗେ ସୁଗ୍ରୀବକୁ

ପଡ଼ାଇ୍ଲ କପତ୍ତି । ସେହ୍ ତୋତେ ସ୍ମରଣା କଲେ ଗୋ ଭଗବତ ॥ ତାହାଙ୍କର କଷ୍ଟ ମାଗୋ ସହି ନ ପାରଲୁ । ହନୂମନ୍ତଙ୍କୁ ତୁ ମାଗୋ ତାଙ୍କ ସଙ୍ଗେ ଦେଲୁ । ସେହ୍ଦନଠାରୁ ସେ ଯେ ନଗ୍ରରେ ରହଲ୍ଲ । ନାମ ଗୋଟି ତୋହର ଅମ୍ବିକା ବୋଲ୍ ଦେଲ୍ଲ । କଳଯୁଗରେ ମାଗୋ ଅସହଣୀ ବାମା । ସକଳ ଦୁଷ୍ଟଙ୍କର ମାଗୋ ଭାଙ୍ଗୁ ତୁ ଗାରମା । ସ-ସ୍ନେହ ଲୋଚନେ ମାଗୋ ଅନାଉ ଯାହାକୁ । ଦୁଷ୍ଟ ଯମ ରାଜା ବାନ୍ଧ ନେବକ ତାହାକୁ । ଏମନ୍ତେ ବନ୍ଦନା ମାଗୋ କରୁଅଛୁ ମୁହିଁ । ନମୋ ସିଦ୍ଧେଶ୍ୱର ମାଗୋ ନମୋ ଅମ୍ବିକାଇ । ମଥାରେ ସିନ୍ଦୂର ମାଗୋ ହୋଇଅଛୁ ମଣ୍ଡି । ଏବେ ଅନାଇବୁ ମାଗୋ ଅଭୟ ରାମ-ଚଣ୍ଡି । ଅଷ୍ଟଗୋଟି ତଣ୍ଡୁଳ ମାଗୋ ଅଷ୍ଟଗୋଟି ଦୁବ । ଷୋଳ-କୋଠି ସ୍ଥାପେଣ ମାଗୋ ଅନୁକୂଳ ଶୁଭ । ଅଷ୍ଟଗୋଟି ପନ୍ନ ମାଗୋ ଅଷ୍ଟଗୋଟି ଫଳ । ଅଷ୍ଟବର୍ଣ୍ଣେ ମୁରୁଜ ମାଗୋ ଦେଇ ସମତୁଲ । ଏ କୋଠି ମଧରେ ମାଗୋ ବଜେ କର ଆସି । ବଜେ କର ଗୋ ଶାନ୍ତାଣି ହିଙ୍ଗୁ ପିଠି ବସି । ଆସ ଆସ ଆସ ମାଗୋ ସିଦ୍ଧଶାର-ଦାଇ । ଆସ ଆସ ଆସ ମାଗୋ ବାଙ୍କିଚଣ୍ଡିକାଇ । ବିଜୟେ କର ମାଗୋ ଦେବ ଶମଲାଇ । ଆସ ଆସ ଆସ ମାଗୋ ଦେବି ହିଙ୍ଗୁ-ଳାଇ । ଆସ ଆସ ଆସ ମାଗୋ ଦେବି ନାରାୟଣି । ଆସ ଆସ ଆସ ମାଗୋ ବିଷ୍ଣୁର ଘରଣି । ଆସ ଆସ ଆସ ମାଗୋ ବ୍ରହ୍ମାଙ୍କର ଛାୟା । ବିଜୟେ କର ମାଗୋ ସାବିତ୍ରି ମହାମାୟା । ଆସ ଆସ ଆସ ମାଗୋ ସିଦ୍ଧଶାରଦାଇ । ତୋହର ଚରଣେ ମାଗୋ ଶରଣ ପଶଇଁ । ଏବେ ଅନୁଗ୍ରହ ହୁଦେ କରସି ଗୋ ମାତ । ବିଜୟେ କର କୋ-ଠିରେ ହୋଇ ସମଗାନ୍ତ । ଅଷ୍ଟବର୍ଣ୍ଣେ ଉପମା ମାଗୋ ତୋହରେ ଶୋଭତା । ବିଜୟେ କର ମାଗୋ ନ କର ମନେ ଚନ୍ତା । ଆସ ଆସ ଆସ ମାଗୋ ଦେବି ନାରାୟଣି । ଆସ ଆସ ଆସ ମାଗୋ ବିଷ୍ଣୁର ଘରଣି । ଆସ ଆସ ଆସ ମାଗୋ ବ୍ରହ୍ମାଙ୍କର ଛାୟା । ବିଜୟେ କର

ମାଗୋ ସାବିତ୍ରି ମହାମାୟା । ଆସ ଆସ ଆସ ମାଗୋ ସିଦ୍ଧଶାର-
ଦାଇ । ତୋହର ଚରଣେ ମାଗୋ ଶରଣ ପଶଇ । ଏବେ ଅନୁ-
ଗ୍ରହ ହୁଦେ କରସି ଗୋ ମାତ । ବିଜୟେ କର ମାଗୋ କୋଟିସମ-
ଗାଙ୍ଗ । ଅଷ୍ଟବର୍ଣ୍ଣେ ମୁରୁଜ ମାଗୋ ଯେ ତୋରେ ଶୋଭିତା । ବିଜ-
ୟେ କର ମାଗୋ ନ କର ମନେ ଚିନ୍ତା । ଆସ ଆସ ଆସ ମାଗୋ
ଦେବି ନାରାୟଣି । ଆସ ଆସ ଆସ ମାଗୋ ବିଷ୍ଣୁର ଘରଣି । ଆସ
ଆସ ଆସ ମାଗୋ ବ୍ରହ୍ମାଙ୍କର ଜାୟା । ଆସ ଆସ ଆସ ମାଗୋ ସାବିତ୍ରି
ମହାମାୟା । ଆସ ଆସ ଆସ ମାଗୋ ସିଦ୍ଧଶାରଦାଇ । ତୋହର
ଚରଣେ ମାଗୋ ଶରଣ ପଶଇ । ଏବେ ଅନୁଗ୍ରହ ହୁଦେ କରସି
ଗୋ ମାତ । ବିଜୟେ କର ମାଗୋ କୋଟି ସମଗାଙ୍ଗ । ଅଷ୍ଟବର୍ଣ୍ଣେ
ମୁରୁଜ ମାଗୋ ଯେ ତୋରେ ଶୋଭିତା । ବିଜୟେ କର ମାଗୋ
ନ କର ମନେ ଚିନ୍ତା । ଆସ ଆସ ଆସ ମାଗୋ ଦେବି ନାରାୟଣି ।
ଆସ ଆସ ଆସ ମାଗୋ ବିଷ୍ଣୁର ଘରଣି ॥ ଆସ ଆସ ଆସ ମାଗୋ
ବ୍ରହ୍ମାଙ୍କର ଜାୟା । ବିଜୟେ କର ମାଗୋ ସାବିତ୍ରି ମହାମାୟା । ଆସ
ଆସ ଆସ ମାଗୋ ସିଦ୍ଧଶାରଦାଇ । କୋଠିରେ ବସି ମାଗୋ
ଶୀତଳା ଯାଅ ଖାଇ । ଏମନ୍ତେ ବନ୍ଦନା ମାଗୋ କରୁଅଛି ତୋତେ ।
ସୁଦୟା କରଣ ମାଗୋ ବସ ହୃଦଗତେ । ମଣିଭଦ୍ରା ବିନ୍ଧ୍ୟରେ ଯେ
ବିଜୟ ତୋହର । କଳାପାଠ ବୋଲଣ ଯେ ପୂଜନ୍ତି ଜଗତର ।
ଅଷ୍ଟକଳା ଧରଣ ବିଜୟେ କରଅଛ । ହାନି ଲାଭ ଭଲ ମନ୍ଦ ଜଗତ
ପାଳୁଛ । ସିଦ୍ଧ ମଙ୍ଗଳା ମାଗୋ ସକଳ ଗୁଣ ଗ୍ରାହି । ସୁଦୟା କରବ
ମାଗୋ ସିଦ୍ଧଶାରଦାଇ । ଭଗବତ ଭାରତ ଯେ ତ୍ରୈଲୋକ୍ୟ
ରକ୍ଷିଣି । ସର୍ବ ସୁତାରଣି ଦୁର୍ଗେ ନମୋ ନାରାୟଣି । ଶୁଣ ଶୁଣ ସାଧୁ-
ଜନେ ଶୀତଳା କାହାଣି । ଆତଙ୍କକାଳେ ଏହାକୁ ପଢ଼ନ୍ତି ଯେଉଁ
ପ୍ରାଣୀ । ବନ୍ଧଘରେ ଥିଲେ ତାର ସାଙ୍କୋଳ ଫିଟିବ । ମଙ୍ଗଳା ପ୍ରସା-
ଦରୁ ସେ କ୍ଳେଶରୁ ତରିଯିବ । ଶଙ୍କଟକାଳରେ ଯେହୁ ଏ ବ୍ରତ

ଗାଇବ । ପ୍ରାତଃକାଳେ ତାହାର ଯେ ବଚନ ଫିଟିବ ॥ ଧନ ଜନ ସମ୍ପଦ ଯେ ହୋଇବ ପ୍ରାପତ । ବୋଲେ ଦୁଃଖୀ ବୃନ୍ଦାବନ ଈଶ୍ୱର ଜଗନ୍ନାଥ ॥

---

ଶ୍ରୀ ଶାରଦା ବନ୍ଦନା ।

ବନ୍ଦଇ ଯେ ଦେବୀ ମାଗୋ ସିଦ୍ଧ ଯେ ଶାରଦା । ତୋହ ପଦ୍ମ ପାଦେ ମାଗୋ ଜଗତ୍ଜନ ପ୍ରଜା । ବନ୍ଦଇ ଶାରଦା ମାଗୋ ଝଙ୍କଡ଼ ପୁରବାସୀ । ବନ୍ଦଇ ଶାରଦା ମାଗୋ କୋଟି ତୋର ଦାସୀ ॥ ବନ୍ଦଇ ଶାରଦା ମାଗୋ ତୋହର ପୟର । ଦର୍ଶନ ମାତ୍ରକେ ମାଗୋ ସର୍ବ ପାପହର ॥ ବନ୍ଦଇ ଶାରଦା ମାଗୋ ଜଗତଠାକୁରାଣୀ । ଜଳ ସ୍ଥଳ ଅନଳେ ମାଗୋ ଦୁଷ୍ଟ ନିବାରଣୀ ॥ ବନ୍ଦଇ ଶାରଦା ମାଗୋ ଜଗତମାତପୁଣି । ଲକ୍ଷେ ଦେବୀଙ୍କ ଉପରେ ଅଟୁ ତୁ ପାଟରାଣୀ ॥ ବନ୍ଦଇ ଶାରଦା ମାଗୋ ଜଗତ୍ଜନମାତା । ଦୁଃଖିଜନଙ୍କର ମାଗୋ ତୋହପାଦେ ଚିନ୍ତା ॥ ବନ୍ଦଇ ଶାରଦା ମାଗୋ ଜଗତ ତାରଣୀ । ତୋତେ ଚିନ୍ତା କରନ୍ତି ଯେ ସବୁ ଜନ ପୁଣି ॥ ବନ୍ଦଇ ଶାରଦା ମାଗୋ ତୋହର ମହିମା । ଅନ୍ତ କରି ନ ପାରନ୍ତି ହରି-ହରବ୍ରହ୍ମା ॥ ବନ୍ଦଇ ଶାରଦା ମାଗୋ ତୋହରୂପ ଗୃହିଁ ॥ ସ୍ୱର୍ଗ ମର୍ତ୍ତ୍ୟପାତାଳରେ କେହି ସମ ନାହିଁ ॥ ବନ୍ଦଇ ଶାରଦା ମାଗୋ ଜଗତଜନନୀ । ଖଡ଼ଗ ଗଦା ମାଗୋ ଶୋହେ ଭୁଜବେନି ॥ ବନ୍ଦଇ ଶାରଦା ମାଗୋ କଟି ବାହୁ ଦଣ୍ଡ । ସର୍ବଜନମାନେ ମାଗୋ ତୋହପଦେ ଗୁଣ୍ଡ ॥ ବନ୍ଦଇ ଶାରଦା ମାଗୋ ନାସା ଯେ ଶ୍ରବଣ । ଦୁରିତ ବିନାଶ ଯାଏ କରନ୍ତେ ଦର୍ଶନ । ବନ୍ଦଇ ଶାରଦା ମାଗୋ କଣ୍ଠ ଯେ ନୟନ ॥ କଟାକ୍ଷ ମାତ୍ରକେ ପାପ ହୋଇବ ଦହନ ॥ ବନ୍ଦଇ ଶାରଦା ମାଗୋ ତୋର ବକ୍ଷଃସ୍ଥଳ । ଦୁଃଖିଜନଙ୍କର ଦୁଃଖ ବିନାଶ ଚଞ୍ଚଳ ॥ ତ୍ରିଭୁବନେ ତୋ ସମାନ କେ ହୋଇବେ କହ ॥

ତୋହର ମହିମାକୁ ନ ଦେବା ଉପଲକ୍ଷ । ସତ୍ୟ ତ୍ରେତା ଦ୍ୱାପର ଯେ ପୁଣି କଳିଯୁଗେ । ଝଙ୍କଡ଼ଗ୍ରାମରେ ମାଗୋ ରହିଲୁ ପୂର୍ବଭାଗେ ॥ ଜଗତଜନନରେ ମାଗୋ ନାମ ତୋ ଶାରଦା । ମାଡ଼ି ବସିଅଛୁ ମାଗୋ ତଳୁଳର ପଦା ॥ ନାନା ଯାତ୍ରା ତୀର୍ଥମାନ ହୁଅଇଅଛ ବସି । ଜନ ମାନେ ସଦା ତୋର ଦରଶନେ ଆସି ॥ ତୋର ପାଦପଦ୍ମେ ମାଗୋ କରନ୍ତି ଗୁହାରି । ସମସ୍ତ ଶୁଣୁଛୁ ମାଗୋ ହୃଦୟ ସ୍ଥିର କରି ॥ ଅପରାଧି ଜନଙ୍କୁ କରୁ ତୁ ପରିତ୍ରାଣ । ଅପୁତ୍ରିକ ଜନକୁ ମାଗୋ ଦେଉ ପୁତ୍ର ଦାନ ॥ ନିଧନେ ଯେ ଦେଇ ଧନ ଦୁରିତ ବିନାଶୁ । ମହିଷାସୁର ମର୍ଦ୍ଦିନୀ ଗୋ ତ୍ରିଭୁବନ ରକ୍ଷୁ ॥ ଅବିଶ୍ୱାସି ଜନକୁ ମାଗୋ କରୁ ବିନା-ଶନ । ଦଣ୍ଡ ଦେଇ ପୁଣି ତୁ ଯେ କରୁ ପରିତ୍ରାଣ ॥ ଯେ ଯେମନ୍ତ ଭାବେ ମାଗୋ ତେମନ୍ତ ତୁ ଦେଇ । ଦୋଷୀଜନେ ଦଣ୍ଡ ପୁଣି ଦିଅ ମହାମାଇ ॥ ଶୁଣ ଆଦମାତ ମାଗୋ ମୋହର ବଚନ । ମୁଁ ତୋତେ ବନ୍ଦନା ମାଗୋ କରେ ମୂର୍ତ୍ତିମାନ ॥ ମନସ୍ଥିର କରି ମାଗୋ କହୁଅଛୁ ମୁହିଁ । ଶରଧା ଚିତ୍ତରେ ମାଗୋ ଯେ ତୋତେ ଭାବଇ ॥ ଯେଉଁ ଜନମାନେ ମାଗୋ ନ କରନ୍ତି ମାୟା । ତାଙ୍କ ଠାରେ ତୋର ମାଗୋ ବହୁତ ସେନେହା ॥ ତୋହ ପାଦପଦ୍ମ ମାଗୋ ସେ କରେ ଭକତି । ଧନ ପୁତ୍ର ଦେଉ ମାଗୋ ସେ ସୁଖ ସମ୍ପତ୍ତି ॥ ଶାରଦାଙ୍କ ସ୍ତୁତି ଯେଉଁମାନେ ପଢ଼ିଛନ୍ତି । ଲକ୍ଷେ ପ୍ରତିମା ଦାନର ଫଳ ସେହୁ ପାନ୍ତି ॥ ଏ ସ୍ତୁତିକି ଯେଉଁମାନେ ପଢନ୍ତି ଶୁଣନ୍ତି । ଷଡ଼ମାସେ ଧନ ଜନ ହୁଅଇ ସମ୍ପତ୍ତି । ତ୍ରିସନ୍ଧ୍ୟାରେ ପ୍ରାତଃକାଳେ ପଢ଼େ ଯେଉଁ ପ୍ରାଣୀ । ସମ୍ପଦରେ ବିଦ୍ୟା ଧନ ଲଭେ ସେହୁ ପୁଣି ॥ ଧନ ଜନ ପୁତ୍ର ଆଦ ତାହାଙ୍କୁ ମିଳଇ । ଶାରଦା ପ୍ରସାଦେ ତାଙ୍କୁ କିଛୁ ଭୟ ନାହିଁ । ମୋହ ନାମ ଗୋଟି ଯେ ସ୍ମରଣ କରୁଅଛୁ । ବାଟରେ ଘାଟରେ ତାକୁ ଭୟ ନାହିଁ କିଛି ॥ କାଳବିକାଳକୁ ଯେହୁ ଦିଅଇ ଘଉଡ଼ । ଆଗେ ମୋ ଭକତ ପଛେ ଥାଇ ତାକୁ ବେଢ଼ି । ମୋହର ଭକ୍ତକୁ

ପୂଣି ଚିନ୍ତଇ ଯେ ମନ । ଶତଗ ବୃନ୍ଦଇ ଯେ ଛେଦଇ ତାର ବନ୍ଧ ॥ ଏ ସ୍ତୁତ ପଢିଣ ମୋହେ କରି ନମସ୍କାର । ମହାଘୋର ସଂଗ୍ରାମକୁ ହୁଏ ଯେ ବାହାର ॥ ମୋହର ପ୍ରସାଦେ ତାର ଛନ ପୂର ଜୟ । ଚିତ୍ତରେ ନ ଥାଏ ଚିନ୍ତା ନ ଉପୁଜେ ଭୟ ॥ ଏ ସ୍ତୁତ ପଢିଣ ସୁମରଇ ଯେଉଁ ନର । ରାଜଦାଣ୍ଡ ବନ୍ଧନରୁ କରଇ ଉଦ୍ଧାର । ଏ ସ୍ତୁତ ଶୁଣିଣ ଯେ କରେ ଉପହାସ ॥ ବଂଶ ନାଶ ଯାଇ ତାର କ ରହଇ ଅଂଶ । ଶାରଦାଙ୍କ ସ୍ତୁତର ଯେ ଏମନ୍ତ ମହିମା । ଜଗତରେ ନାହିଁ କିଛି ଦେବାକୁ ଉପମା ॥ ସାତଦିନ ସାତବାର ପଢ଼ନ୍ତି ଯେଉଁମାନେ ॥ ଲଭନ୍ତି ସର୍ବଦା ଫଳ ବାଞ୍ଛନ୍ତି ଯା ମନେ ॥ ପ୍ରାପତ କରାଇ ମୁହିଁ ତାଙ୍କୁ ବହୁଫଳ । ଦୁରିତମାନଙ୍କୁ ସବୁ ହରେ ତତକାଳ ॥ ଶୁଣ ଗୋ ଅଭୟ-ବରଦାତ୍ରି ଶାରଦାଇ । ଅପରାଧୀ ଭୃତ୍ୟକୁ ଗୋ କେ ରଖନ୍ତା ନାହିଁ ମୁଁ ଛାର ମାନବ ମାଗୋ କିଛି ନ ଜାଣଇ । ଆଜ୍ଞା ଦିଅ ମାଗୋ ତୋ ଚରଣେ ରହିଥାଇ ॥ ମୁହିଁ ମୂର୍ଖଜନ ମାଗୋ ମାଗୁଛି କାରଣ । ଯମର ଦଣ୍ଡରେ ମୁଁ ଯେ ନୋହିବ କଷଣ ॥ ତୋହର ଆଜ୍ଞାରେ ମାଗୋ ତୋର ପାଦ ବନ୍ଧ । ପାଇବି ଅଶେଷ ସୁଖ ହୋଇବି ଆନନ୍ଦ ॥ ଦୟା କର ଆଦିମାତା ସିଦ୍ଧ ଠାକୁରାଣୀ । ନମଇଁ ଶାରଦା ମାଗୋ ଅପରାଧଭଞ୍ଜନ ॥ ନମଇଁ ଶାରଦା ମାଗୋ ତୋର ପାଦ ଦୁଇ । ତୋର ପାଦପଦ୍ମେ ମାଗୋ ଶରଣ ପଶଇ । ବନ୍ଦଇ ଶାରଦା ମାଗୋ ତୋର ଅଳଂକାର ॥ ଶରଣ ସମ୍ଭାଳ ତୋ ଚରଣେ ଦାସ କର ॥ ବନ୍ଦଇ ଶାରଦା ମାଗୋ ପତନୀର ବେଶ । ସିନ୍ଦୂର ଚିତାରେ ମୋର ରହିଅଛି ଆଶ ॥ ବନ୍ଦଇଁ ଶାରଦା ମାଗୋ ଜଗତପାଳଣି । ବନ୍ଦଇଁ ଶାରଦା ମାଗୋ ଶିରେ ଶୋଭେ ବେଣୀ ॥ ତ୍ରାହି କର ମତେ ମାଗୋ ଶଙ୍କଟତାରିଣି । ଦାସ ପଦେ ରଖ ମା ଶାରଦା ଠାକୁରାଣୀ ॥ ନମଇଁ ଶାରଦା ମାଗୋ କୋଟି ଦେବଗଣ ॥ ରାମଦାସ ଶ୍ରୀପଦ୍ମରେ ପଶିଲା ଶରଣ ।

———————

## ଦୀନବନ୍ଧୁ ଜଣାଣ ।

ଦୀନବନ୍ଧୁ କୃପାସିନ୍ଧୁ । ତୁମ୍ଭେ ସର୍ବ ଜୀବ ଜନ୍ତୁଙ୍କ ବନ୍ଧୁ ହେ ॥ ଘୋଷା । ବାରେ ମୁଁ ତୁମ୍ଭ ଶ୍ରୀଛାମୁରେ ॥ ଜଣାଉଛି ଶୁଣ କର୍ଣ୍ଣରେ ମୁଁ ଜନ୍ମ ଲଭି ଏ ସଂସାରେ । ଭାସି ଗଲି ଏ ଦୁଃଖ ସାଗରେ ହେ । ୧ । ମୋଠାରେ ଦୋଷକୁ ନ ଘେନ । ସୁଦୟା କରିବା ବଦନ । ତୁମ୍ଭର ବ୍ୟତୀତେ ମୋ ମନ । ଅନ୍ୟଦେବତାରେ ନାହିଁ ଧ୍ୟାନ ହେ । ୨ । ତୁମ୍ଭେତ ଦୟାଳୁ ପୁରୁଷ । ତୁମ୍ଭଠାରେତ ନାହିଁ ଦୋଷ । ଦୁଃଖିଜନଙ୍କୁ ଯେ ନିରାଶ । ଆଶା ଦେଇ ରଖ ତୁମ୍ଭେ ପାଶ ହେ । ୩ । ତୁମ୍ଭ ପଦ୍ମପାଦେ ଯା ଭାବ । ଏ ଭବସଂସାରେ କି ଲାଭ । ତୁମ୍ଭର ନାମକୁ ଯେ ନାବ । କରି ତରିଗଲେ ପହ୍ଲାଦ ଧ୍ରୁବ ହେ । ୪ । ଗ୍ରାହା ନିବାରଣ ମୁରାରି । ଗଜଙ୍କୁ ଉଦ୍ଧାରଣ କରି । ଅତଙ୍ଗେ ଡାକିଲା ଯେ ହରି । ତାକୁ ରଖିଲ ଯେ କେଉଁ ପରି ହେ । ୫ । ମୃଗଣୀର ବିପତ୍ତି ଦେଖି । ଚକ୍ର ପେଶିଲେ ପଦ୍ମଆଖି । ସ୍ୱର୍ଗରେ ଦେବତା ଦେଖି । ମନ ଆନନ୍ଦରେ ହେଲେ ସୁଖୀ ହେ । ୬ । ଦୁର୍ଯ୍ୟୋଧନର ସଭାତଳେ । ଦ୍ରୌପଦୀ ଡାକିଲା ବିକଳେ । ତାହାର ସେ ଆତଙ୍କ କାଳେ । ବସ୍ତ୍ର ଦେଲ ତାଙ୍କୁ ସୁଖ ଭୋଳେ ହେ । ୭ । ବସୁଦେବଘରେ ଜନମ । ନନ୍ଦପୁରେ ଯେ ନେଲ ଦନ । ତହିଁ ଯେତେକ କର୍ମମାନ । ମୁହିଁ କହିବାକୁ ଭାଜନ ହେ । ୮ । ଅଧମପତିତ ପାମର । ସାଧୁ ସଙ୍ଗ ଯେ ନାହିଁ ମୋର । ତୁମ୍ଭେ ବାରେ ଦୟା କର । ଭବଦୁଃଖ ଯାଉ ମୋର ପାର ହେ । ୯ । ଗରୁଡ ପଛରେ ରହି । ଜଣାଉଛ୍ଛ ଆହେ ଭାବଗ୍ରାହୀ । ଏଥୁଁ କର ମୋତେ ତ୍ରାହି । ପ୍ରଭୁ ଅନ୍ତର୍ଗତେ ଦୟା ବହି ହେ । ୧୦ । ଅନ୍ତର ବେଦନାକୁ ଜାଣ । ଶରଣ ମୁଁ ତୁମ୍ଭ ଶ୍ରୀଚରଣ । ଦୟା କର ତତକ୍ଷଣ ମୁଁ ଯେ ହୋଇଯାଏ ଉଦ୍ଧାରଣ ହେ । ୧୧ । ଅଚ୍ୟୁତ ଅନନ୍ତ ମୁରାରି । ଶ୍ୟାମସୁନ୍ଦର ଦଇତାରି । ଗୋବର୍ଦ୍ଧନ ହେ ଗିରିଧାରି । ପ୍ରଭୁ ବୃନ୍ଦାବନ କୁଞ୍ଜବିହାରୀ ହେ । ୧୨ । ଗୋବିନ୍ଦ ଗୋପାଳ ତୋ ନାମ ।

ରାମକୃଷ୍ଣ ଯେ ଭଗବାନ । ଜୟ ଶିରୀ ମଧୁସୂଦନ । ମୋତେ ରକ୍ଷାକର ନନ୍ଦନନ୍ଦନ ହେ । ୧୩ । ଜୟ ଶ୍ରୀମଦନ ମୋହନ । ଫେଡ଼ ଯେ ମୋର ଅଭିମାନ । ଦୟା କର ଜଗନ୍ମୋହନ । ଢଳ ନ ଯାଉ ଏ ମୋର ଜୀବନ ହେ । ୧୪ । ତୁମ୍ଭେ ପରା ନନ୍ଦନନ୍ଦନ । ବୋଲଅ ରଙ୍କ ଲୋକଙ୍କ ଧନ । ଗୋପୀ ଜନଙ୍କର ଜୀବନ । ରାଧା ହୃଦପଦ୍ମ ଶ୍ରୀଚନ୍ଦନ ହେ । ୧୫ । ଏବେ ମୁଁ ଜଣାଉଛି ଯେତେ । ଶୁଣନା କର୍ପା କଦା ଚିତ୍ତେ । ସୁଦୟା ନୋହିଲେ ମୋତେ । ନିନ୍ଦା ହୋଇବଟି ପ୍ରଭୁ ଏଜଗତେ ହେ । ୧୬ । ମୁ ତୁମ୍ଭର ଦାସର ଦାସ । ମୋଠାରେ ନ କର ନିରାଶ । ଆହେ ପ୍ରଭୁ ପୀତବାସ । ନଷ୍ଟେଁ ପଢଇ ଗଲାଣି ନାଶ ହେ । ୧୭ । ମୁ ବଡ ଅଧମଜୀବ । ମୋଠାରେ ସୁଦୟା ହୋଇବ । ଅନ୍ତର୍ଗତେ ଜାଣ ସର୍ବ । ବାରେ କରୁଣା ଯେବେ ନୋହିବ ଯେ । ୧୮ । ଏ ଜଗତେ ରୂପ-ଖ୍ୟାତ । ହେବ ଆହେ ଶିରୀପତି । ମୁଁ ତୁମ୍ଭ ଚରଣେ ଭକତ । ବରି ଭାବୁଅଛି ନିତନିତ ହେ । ୧୯ । ସୁଦୟା ଯେବେ ନୋହିବ । ଅପଯଶ ଖ୍ୟାତ ହୋଇବ । ମୋହର କରମେ ଦଇବ । ଯାହା ଲେଖିଥିବ ତାହା ହୋଇବ ହେ । ୨୦ । କର୍ମର କରତା ଆପଣ । ଅକର୍ମ ଜନଙ୍କୁ ଉଦ୍ଧାରଣ । ଏପରି ସଂସାରେ ଭିଆଣ । ଥିଲି ଜଣାଗଲି ମୋଠାରେ ପୁଣ ହେ । ୨୧ । ଆଉ ମୁଁ ଜଣାଇବି କେତେ । ଦୟା ନୋହିଲା ଅନ୍ତର୍ଗତେ । ଭାସି ଗଲି ମୁ ଜଗତେ । ନିନ୍ଦା ହୋଇବ ଯେ ପ୍ରଭୁ ତୋତେ ହେ । ୨୨ । ଭକ୍ତ ମୁଖୁଁ ଏମନ୍ତ ଶୁଣି । ଦୟାସାଗର ଚୀନମଣୀ । ବୋଇଲେ ଶୁଣ ମୋ ବାଣୀ । ଅନ୍ତେ ପାଇବୁ ତୁ ମୋତେ ପୁଣି ହେ । ୨୩ । ଶ୍ରୀଚରଣେ ଚିତ୍ତ ଯେ ରହୁ । ଏହି ଭାବେ ତୋ ଦିନ ଯାଉ । ବିଷୟାର ବିଷରେ ଆଉ । ଚିତ୍ତ ତୋହର କେବେ ନ ଥାଉ ହେ ॥ ଏମନ୍ତ ତାଙ୍କ ଆଜ୍ଞା ଶୁଣି । ଉତ୍ସବ ମନ ଆନନ୍ଦେ ଭଣି । ଦୀନବନ୍ଧୁ ଯେ ଯେ କୃପାସିନ୍ଧୁ । ତୁମ୍ଭେ ସର୍ବ ଜୀବ ଜନ୍ତୁଙ୍କ ବନ୍ଧୁ ହେ । ୨୫ ।

---

ଭଜନ ।

ଅକାଣ୍ଡିକନରେ ହେ । ଯେତେ ବେଗେ ଦସ୍ୟୁ ବନ୍ଧ । ଜନକ ମାତା ପିତା କାନ୍ତା ସୁତଠାରେ ନୁହଁ ତେତେ ଅନୁଗ୍ରହ । ଘୋଷା । କଂସ କାରାଗୃହେ ମାତା ବନ୍ଧାଥିଲେ ପ୍ରିୟେ କେଳି କଲ ଯାଇ । କରିକ ବିପତ୍ତି ପଡନ୍ତେ ତକ୍ଷଣେ ଅରି ଧରି ଗଲ ଧାଇଁ । ୧ । କଳନ୍ଦ୍ର ବିଂଶାକ୍ଷପୁରେ ବନ୍ଧଥିଲେ କାଳକେ ତାରିଲ ତାଙ୍କୁ । ଦଣ୍ଡକ ଉଢରେ କୋଟିବସ୍ତ୍ର ଦେଲ ପାଣ୍ଡବ ଗୃହିଣୀଙ୍କୁ । ୨ । ସୁତକୁ ଶମ୍ବରା ସ୍ୱର ହରି ନେଲା ତହୁଁ ନ ହେଲ କଷ୍ଟ । ଉତ୍ତରା କୁମରେ ବିପତ୍ତି ପଡ଼ନ୍ତେ ଗର୍ଭେ ପଶି କଲ ରକ୍ଷା । ୩ । ଶାସ୍ତ୍ର ପୁରାଣରେ ଲେଖା ହୋଇଅଛୁ କେ କରିବ ଅପ୍ରମାଣ । ଅଧମ ଚନ୍ଦ୍ରଶେଖର କହେ ପ୍ରଭୁ ଗୁହାସ୍ତ୍ର କପାଁ ନ ଶୁଣ । ୪ ।

ସମ୍ପୂର୍ଣ୍ଣ



UNION PRINTING WORKS,—CUTTACK